# ଆମ ଏ ଭାରତ

ଲେଖକ :

**ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ**

ବାଣୀ ବିତାନ, ଅନଗୁଳ

ଜିଲ୍ଲା : ଢେଙ୍କାନାଳ

ଶିଳ୍ପୀ...ଅପର୍ଣ୍ଣା ରାୟ

ପ୍ରକାଶକ :

**ଗଙ୍ଗାଧର ତ୍ରିପାଠୀ**

**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**

ବିନୋଦବିହାରୀ, କଟକ - ୨

ପରିମାର୍ଜିତ ସଂସ୍କରଣ - ୨୦୦୧

ମୁଦ୍ରଣ :

**ଶ୍ରୀ ନୀଳକଣ୍ଠ ପ୍ରେସ୍**

ବଡ଼ାନାସୀ, କଟକ – ୮

**ମୂଲ୍ୟ : ଆଠ ଟଙ୍କା ମାତ୍ର**

# ସୂଚୀ





# ଆମ ଏ ଭାରତ...

॥ ୧ ॥

ମଥାରେ ଯାହାର ନିତ୍ୟ ତୁଷାର
        ହୋଇଚି ଶୁକ୍ଳ ଜଟ,
ଜଗତ ପାଇଁକି ମୁକ୍ତ ହୋଇଚି
        ବିଶାଳ ହୃଦୟପଟ,

ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର
        ସିନ୍ଧୁ ନଦୀର ଧାରା
କରରେ ଯାହାର ସେବା ସାଧନାର
        ହୋଇଅଛି ଜପାମାଳା,

ଚରଣତଳରେ ଦିନରାତି ପୁଣି
        ଲୋଟୁଚି ରତ୍ନାକର,
କିଏ ସେ ଜାଣେନି ଆମ ଏ ଭାରତ
        ଜଗତଯାକରେ ବଡ଼ ?

॥ ୨ ॥

ଶବର ଶରରେ ବଣମୂଳକରେ
କ୍ରୌଞ୍ଚ ହୋଇଲା ହତ,
କ୍ରୌଞ୍ଚୀର ଶୋକେ କବିର ବିଳାପ
ଶ୍ଳୋକେ ହେଲା ପରିଣତ ।

ବିମାତା-କଥାରେ ଯୁବରାଜ ଯହିଁ
ରାଇଜରୁ ଗଲେ ବନେ,
ବିମାତାର ସୁତ ଭାଇର ପାଦୁକା
ପୂଜିଲେ ସିଂହାସନେ;

ଆଉ ବିମାତାର ପୁତ୍ର ହୋଇଲେ
ସହଚର, ଅନୁଚର,
କିଏ ସେ ଜାଣେନି ଆମ ଏ ଭାରତ
ଜଗତଯାକରେ ବଡ଼ ?

॥ ୩ ॥

ଯୋଦ୍ଧା ନ ହୋଇ ସାରଥି ହୋଇଲେ
ମହାନ୍ ଜଗତ-ଜିତା
ସମରଭୂଇଁରେ ଶୁଣାଇଲେ ବାଣୀ
ଅମର ଆମର ଗୀତା ।

ତପରେ ଦଧୀଚି ମୁନି ଯେ ପାଇଲେ
ଜୀବନର ସଂଧାନ,
ଅସୁର-ବିନାଶେ ଅସ୍ତ୍ର ହେବାକୁ
ଅସ୍ଥି କରିଲେ ଦାନ ।

ଯମଠାରୁ ସତୀ ଫେରାଇ ଆଣିଲେ
ଜୀବନର ଈଶ୍ୱର,
କିଏ ସେ ଜାଣେନି ଆମ ଏ ଭାରତ
ଜଗତଯାକରେ ବଡ଼ ?

॥ ୪ ॥

ଶାକ୍ୟ-କୁମାର ସଂସାର ତେଜି
ସନ୍ନ୍ୟାସ କଲେ ସାର,
ବିଚାର କରିଲେ, ପ୍ରଚାର କରିଲେ
ଧର୍ମ ଅହିଂସାର ।

ଗାନ୍ଧିଜୀ ସେଇ ଧର୍ମର ଧାରା
ଅନୁସରି ଜୀବନରେ,
ପରାଧୀନ ଆମ ଭାରତ ଦେଶକୁ
. ମୁକ୍ତ ସ୍ୱାଧୀନ କଲେ ।

ସେଇ ଧର୍ମରେ ଜାଣି ଜାଣି ପୁଣି
ବରିଲେ ମୃତ୍ୟୁ-ବର,
କିଏ ସେ ଜାଣେନି ଆମ ଏ ଭାରତ
ଜଗତଯାକରେ ବଡ଼ ?



**ଆମ ଏ ଦେଶରେ**
**ଚାଳିଶ କୋଟି ତ**
**ମୋହରି ଭଉଣୀ ଭାଇ**

କେବେ କେତେବେଳେ
ପିଲାପିଲୀ ଦଳେ
ଯାଉଥିଲେ ବାପୁ ପାଶେ,
ଭଲ ଭଲ କଥା
କଉତୁକ – କଥା
ଜାଣିବା ଶୁଣିବା ଆଶେ ।
ଦିନକର ଜଣେ
ପିଲା ପଚାରିଲା –
"ବାପୁଜୀ ଆମକୁ କୁହ ।
ଆମ ଏ ଦେଶର
ଏତେ ବଡ଼ ତୁମେ,
ଜାମା କିଆଁ ପିନ୍ଧୁନାହଁ ?"

ହସି ହସି ତହୁଁ
ବାପୁଜୀ ବୋଇଲେ –
    ''ମୋ ପାଖରେ ଧନ କାହିଁ ?
ଗରିବ ମୁଁ, ଧନ
ପାଇବି କୋଉଁଠୁ ?
ଜାମାପାଇଁ ମନ ନାହିଁ ।''

ଶରଧାରେ ପିଲା
କହଇ ''ମୋ ମାଆ
    ସିଲେଇ ଜାଣନ୍ତି ଭଲ,
ମୋହର ଏ ଜାମା
କରି ଦେଇଚନ୍ତି,
    ଆଉ ଅଛି ଯେତେ ମୋର ।

ମାପ ନେଇ ଦେଲେ
ତିଆରି ଦେବେ ସେ
    ଜାମାଟିଏ ତୁମ ପାଇଁ ।
ପଅର ଦିନକୁ
ଆଣି ଦେବି ବାପୁ;
ତୁମେ କି ପିନ୍ଧିବ ନାହିଁ ?

"ତୁମ ମାଆ ତେବେ
କେତେ ଖଣ୍ଡ ଜାମା
ତିଆରି ପାରିବେ ଭଲା ?"
"ଦୁଇ ତିନି ଖଣ୍ଡ
କରିଦେବେ ସିଏ
ଯେତିକି ତୁମର ଲୋଡ଼ା ।"

"ଆମ ଏ ଦେଶରେ
ଏକେଲା ନୁହେଁ ମୁଁ
ଏକେଲା ପିନ୍ଧିବି ନାହିଁ;



ଆମ ଏ ଦେଶରେ
ଚାଳିଶ କୋଟି ତ
ମୋହର ଭଉଣୀ ଭାଇ !

ଯେତେଦିନ ଯାଏ
ସେମାନେ ସଭିଏ
ପିନ୍ଧି ନାହାନ୍ତିରେ ଜାମା,
ମୁଁ କେଉଁପରି
ଏକେଲା ପିନ୍ଧିବି
କହ ଦେଖି ଆରେ ଗାମା,

ଆତୁର ନୟନେ
ପଚାରଇ ପିଲା,
ବାପୁଙ୍କ ମୁହଁକୁ ଚାହିଁ
''ଆମ ଏ ଦେଶରେ
ଚାଳିଶ କୋଟି କି
ତୁମର ଭଉଣୀ ଭାଇ ?''

''ଆଜି ମୋ ପାଖରେ
ବସିଅଛି ଯେତେ
କୁହ ମତେ ଏବେ କୁହ,
ଭାବି ଚିନ୍ତି ଟିକେ
କୁହ ତୁମେ ସବୁ
ଭାଇ ଭଉଣୀ କି ନୁହଁ ?''

ହଁ ବୋଲି ଯେବେ
କହିଲେ ସଭିଏ,
ବାପୁଜୀ ବୋଇଲେ ବାଣୀ –
"ଭାରତ ଆମର
ଜନମ ଦେଶରେ
ତୁମେମାନେ ଅଛ ଜାଣି ।

ଭାରତର କଥା
ଭାବନା ମୋହର
ଭାରତର ଲୋକମାନେ,
ସଭିଏ ମୋହର
ଭାଇ ଭଉଣୀରେ,
ବୁଝୁଁଅଛି ପ୍ରାଣେ ପ୍ରାଣେ ।

ସେଇଥିପାଇଁ କି
ପଣ କରିଅଛି
ଲାଗିଅଛି ଦେଶ ପାଇଁ ।
କେଉଁପରି ଭଲା
ଖାଇବେ, ପିନ୍ଧିବେ
ମୋହର ଭଉଣୀ ଭାଇ ?

ତୁମେମାନେ ତେବେ
କଅଣ କରିବ
ଆରେ ଶାମ, ବନ, ଘନ,
ନିଜ କଥା ପରି
ପଡ଼ୋଶୀଙ୍କ କଥା
ବୁଝିବାରେ ଦିଅ ମନ ।

ମୋତେ ନ ପଚାରି
ପଚାରି ବାବୁରେ
ଯା ଦିହରେ ଜାମା ନାହିଁ,
ମାଆଙ୍କ ହାତରେ
ତିଆରି କରାଇ,
ଆଣିଦିଅ ତାହାପାଇଁ ।

ଜାମା ତ ମୋହର
ଦରକାର ନାହିଁ
ମାତ୍ର ମୁଁ ଏତିକି ମାଗେ,
ଜଣ ଜଣ ହୋଇ
ଦେଶ ସେବା ଲାଗି
ପଣ କର ମୋର ଆଗେ ।''

ଏକାବେଳେ ତହୁଁ
ଏକ ସ୍ୱର ତୋଳି
ଜଣାଇଲେ ପିଲାମାନେ,
''ତୁମର କଥା ତ
ମଥାରେ ଘିନିବୁ
ପଣ କରୁଅଛୁ ଆମେ ।''

ହସି ହସି ବାପୁ
ବୋଇଲେ – ''ତୁମେରେ
ମୋ ଦେଶର ଭବିଷ୍ୟତ,
ତୁମେମାନେ ଲଢ଼ି
ପାରିଲେ ମୋହର
ସପନ ହୋଇବ ସତ ।''



# ବର୍ଷା ଆଜି ଝରୁଚି ଝରଝର

ସତ୍ୟବାଦୀ ଅଞ୍ଚଳରେ
କୃଷ୍ଣ ଘନ ଘୋର
ରାତ୍ରୀ ସାରା ବର୍ଷା ଧାରା
ଝରୁଚି ଝରଝର ।

ଛାତ୍ରାବାସ — ବାରନ୍ଦାରେ
ସୁପ୍ତ ହରିହର
ନିଦ୍ରା ହଠାତ୍ ଭାଙ୍ଗିଗଲା
ଶୁଣି ସେ କାର
କ୍ରନ୍ଦନର ସ୍ୱର ।

ଭାବିଲେ କିଏ ଅନ୍ତେବାସୀ
କାନ୍ଦୁଅଛି କିଏ ?
ଲକ୍ଷ୍ୟ କରି ଜାଣିଲେ ଶେଷେ
ଦୀନବନ୍ଧୁ
ଗୋପବନ୍ଧୁ ସିଏ ।

ଗୋପବନ୍ଧୁ ଶଯ୍ୟାପାଶେ
ଅଚିରେ ଯାଇ ଅଧୀର ଭାଷେ
"ଆଜ୍ଞା କିପାଁ କାନ୍ଦୁଅଛ ।"
ପୁଚ୍ଛିଲେ ହରିହର
କରୁଣ ପ୍ରାଣ କଅଣ ଭାବି
ବୋଇଲେ ସତ୍ୱର –



"ଅଚିନ୍ତାରେ କାହିଁକି ତୁମେ
ଶୋଇବ ନାହିଁ ଭଲା !
ଦେଶରେ ଏବେ କେଉଁଠି କାହିଁ
ଦୁଃଖ ନାହିଁ,
ବେଦନା ନାହିଁ ପରା !

କହୁଚି ତେବେ ଶୁଣିବ ଶୁଣ,
ଦି ଚାରି ମାସ ତଳେ ,
ମୁଁ ଯାଇଥିଲି କେନ୍ଦ୍ରାପଡ଼ା –
ବଢ଼ିର ଅଞ୍ଚଳେ ।

ଛପର ଚାଳ ନ ଥିଲା ତହିଁ
ନଥିଲା ବହୁଘରେ,
ଭାବିଲି ତେବେ ସେ ଗାଆଁ – ଲୋକ
କେମିତି ଥିବେ ଭଲେ ?

ହଠାତ୍ ସେଇ ଦୃଶ୍ୟ ମୋର
ଆଖିରେ ଦିଶିଗଲା,
ହଠାତ୍ ସେଇ ଦୃଶ୍ୟ ମୋର
ପ୍ରାଣରେ ମିଶିଗଲା ।

ଧୈର୍ଯ୍ୟ ମୋର ରହିଲା ନାହିଁ ଆଉ,
ଛାତିଟା ମୋର ହୋଇଲା ଚାଉଁ ଚାଉଁ ।
ବର୍ଷା ଏଠି ହେଉଚି ଝରଝର
ବର୍ଷା ସେଠି ଥିବ ତ ହରିହର ।''
ଦୀନବନ୍ଧୁ
ଗୋପବନ୍ଧୁ
ଥରିଲେ ଥରହର ।

''ବର୍ଷା ଏଠି ହେଉଚି ଏଇ ଲାଗେ
ବର୍ଷା କ'ଣ ଥିବ ସେ ଭୂଇଁ ଭାଗେ ?
ଆଜିକି ତାହା ଦି ଚାରି ମାସ ହେଲା,
ସେମିତି ଭଲା, ସେମିତି ଥିବ ମେଲା ?
ମହାନ୍ ପ୍ରାଣ ଆହେ,
ସେ ଲାଗି ଏତେ
ଆତୁର କିପାଁ
ହେଉଚି ଶିଶୁପ୍ରାଏ ?

ହୃଦୟ ତବ କରକା ଭଳି
ସସଂଭ୍ରମେ ଯାଉଚି ଗଳି
ଚିନ୍ତା ଟିକେ କର ।''
ସଂବେଦନ ଦେଖାଇ ତହିଁ
ବୋଇଲେ ହରିହର ।

''ଚିନ୍ତା କରି ହରିହର ହେ,
ମନରେ ନିଅ କଳି,
ବଥାରେ ମୁହିଁ ହେଉଚି କ'ଣ
କାତର ଏଇ ଭଳି ?

''ବୃଥାରେ ତୁମେ ଏପରି ଭଲା
କାତର ହେଉ ନାହିଁ,
ଜଗତେ ତା'ର ତୁଳନା ନାହିଁ
ଦେଖୁନି ତୁମ ପ୍ରାୟ ।

ଉଦାର ତବ ମହାନ୍ ଭାବ
ଚିନ୍ତି ପାରୁ ନାହିଁ,
ଶ୍ରଦ୍ଧାର ମୋ ନମସ୍କାର
ବାଢୁଚି ସେଥିପାଇଁ ।''



# ଆମ ଏ ଦେଶର ମୁନି

ସେଦିନ ସେ ଏକ ବହି ଦୋକାନରେ
ବସିଥିଲେ ହରିହର,
ସେଇ ବାଟେ ମୋର ଲକ୍ଷ୍ୟ ଜାଗାକୁ
ହେଉଥିଲି ଆଗଭର ।

ଭାଗ୍ୟକୁ ଶୁଭ ଦର୍ଶନ ପାଇ
ସେଇଠାରେ ଗଲି ରହି,
''ପ୍ରଣାମ ଆଜ୍ଞା, ପ୍ରଣାମ ଆଜ୍ଞା ।''
ହୃଦୟ ଢାଳିଲ ତହିଁ ।

''କିଏ ତୁମେ ବାବା, କିଏ ତୁମେ ବାବା ?''
ଚାହିଁଲେ ଜାଣିବା ଆଶେ,
''ଗଡ଼ନାୟକ ମୁଁ ପ୍ରଣାମ କରୁଚି ।''
ବୋଇଲି ବିନୀତ ଭାଷେ ।

''କୋଉଠି, କୋଉଠି ? ଖୋଜିଲେ ''କୋଉଠି ?''
ତାଙ୍କର ହାତ ତଳେ,
ମଥା ନତ କରି ଛୁଆଁଇଲି ଯେବେ,
ଆଉଁଷିଲେ ସ୍ନେହଭରେ ।

''ଦୃଷ୍ଟି ଶକତି ହରାଇ ଦେଲିଣି,
ଦିଶୁନାହିଁ ଆଉ ଜମା,
କାହାକୁ କେମିତି ଚିହ୍ନି ପାରିବି ?
କିଛି ପଡୁନାହିଁ ଜଣା ।

ଲୋକେ ତ ଏଣିକି ବଦନାମ ମତେ
କଲେଣି ସେଇଥିପାଇଁ,
ପ୍ରଣାମ କରିଲେ ଆଉ କୌଣସି
ପ୍ରତିଦାନ ମିଳୁ ନାହିଁ ।'

ବିନୀତ ଭାଷାରେ ଉତ୍ତର ଦେଲି –
'ମୁଁ ଜାଣିଥିଲି ବୋଲି
ପ୍ରଣତି ମୋହର ଜଣାଇଲା ବେଳେ
କହିଲି ତୁଣ୍ଡ ଖୋଲି ।



ମାତର ଯୁଗର ଯୋଗ୍ୟ ଦାୟାଦ
ଆମେ କି ସହଜ ଜନ ?
ଆପଣ କେମିତି ବୁଝିପାରିବେ ଯେ
ଆମ ଏ ଯୁଗର ମନ ?

ଯେଉଁ ଗାନ୍ଧିଜୀ ଆମରି ହାତରେ
ଦେଲେ ଆଣି ସ୍ୱାଧୀନତା,
ଦେଶରେ ସିଏ ତ ବାପୁଜୀ ଆମର,
କିଏ ଜାଣେନି ଏ କଥା ?

ଶେଷରେ ତାଙ୍କୁ ବିଦାକଲୁଁ ଆମେ
ଗୁଳି ପରେ ଗୁଳି ମାରି,
ଆମକୁ କଅଣ ବୁଝିବେ ଆପଣ
ଗାନ୍ଧି ପତାକା-ଧାରୀ ?

ଆଙ୍କୁ ଆମେ ବଦନାମ ଦେଇ
ବିଦାୟ ନ କରୁ ଯେବେ,
ଭାରତ ଭୂଇଁର ଯୋଗ୍ୟ ଦାୟାଦ,
କେମିତି ହୋଇବୁ ଏବେ ?''

''କବି କହୁଅଛି !'' ଉଚ୍ଚେ ହସିଲେ
ଆମ ଏ ଦେଶର ମୁନି,
ଆଉ ଯିଏ ଥିଲେ ବହୁତ ଭାବିଲେ
ସେଇଠି ସେକଥା ଶୁଣି ।



## ହରିହର ଓ ଶଶୀ

ବଡ଼ଦାଣ୍ଡର ଖଦୀ ଭଣ୍ଡାରେ
ଦୁଇଟି ବାଳକ ଯାଇ
ଖଦଡ଼ର ଥାନ ଦେଖା ଦେଖି କଲେ
କାମିଜ୍ କରିବା ପାଇଁ ।

ଖଦୀ-ବିକ୍ରେତା ଦେଖାଇଲେ ଯେବେ
ଭଲ ଭଲ ଧଳା କନା,
"ଆମର ଏ କନା ଦରକାର ନାହିଁ ।"
ଦୁହେଁ ଯା କରିଲେ ମନା ।

"ରଙ୍ଗୀନ କନା ଚାହୁଁଅଛୁ ଆମେ,
ମଇଳା ହୋଇଲେ ଯାହା,
ସହଜରେ ଜଣା ପଡ଼ିବ ନାହିଁଟି
ଆଣିଲେ, ଦେଖିବୁ ତାହା ।"

ହରିହର ଦାସେ ବସିଥିଲେ ପାଶେ
ସେଥିରୁ ଜଣକୁ ଚାହିଁ,
ପୁଛିଲେ, ''ଆରେ ତୁ ରାମ ପୁଅ ପରା,
ପଢୁଚୁଟି ଏଠି ଥାଇ ?

ସେ ଜଣକ ଉଠି 'ହଁ' ଭରି ଦେଲା,
ଦୁହେଁ ଯା ଭକତି ଭରେ –
ପିତୃକଳପ ଗୁରୁଜନ ଭାବି
ବିନୀତ ପ୍ରଣାମ କଲେ ।

ହରିହର ପୁଣି ପଚାରିଲେ – ''ଆରେ,
କଅଣ ତୋଅର ନାଁ ?
ଶଶୀ ବୋଲି ଜାଣି ହର୍ଷେ ବୋଇଲେ –
''ଚନ୍ଦ୍ରମା ଆରେ ବାଃ ।

ମଇଳା କାହିଁକି ସଫା କରିବନି,
ଲୁଚାଇବା ପାଇଁ ମନ ?
ରଙ୍ଗୀନ କନା କିଣିବାକୁ ଏବେ
ହେଉଅଛି ପ୍ରୟୋଜନ !''

ଖଦୀ-ବିକ୍ରେତା ପ୍ରବୀଣଙ୍କର
କହି ଦେଲେ ପରିଚୟ,
ନବୀନ ଦୁଇଟି ଯୋଡ଼ ହାତ ପୁଣି
ବିସ୍ମିତ ଅତିଶୟ ।



''ଆପଣଙ୍କର କଥାର ମର୍ମ
ଘେନୁଅଛୁ ମହାମନା,
ରଙ୍ଗୀନ କନା ଲୋଡ଼ା ନାହିଁ ଆଉ,
ଲୋଡ଼ା ଏବେ ଧଳା କନା ।

ମଇଳା ହୋଇଲେ ସଫା କରୁଥିବୁ
ମଇଳା ରଖିବୁ ନାହିଁ,
କଥାର ମର୍ମ ଯତ୍ନେ ପାଳିବୁ –
ନିଜ ମଙ୍ଗଳ ପାଇଁ ।''

''ଲକ୍ଷ୍ୟ ମୋହର ବୁଝିପାରିଅଛ,
କାମିଜ କେବଳ ନୁହେଁ,
ଆପଣାକୁ ସଦା ସଫା ରଖୁଥିବ
ଭଲ ପିଲା ତୁମେ ଦୁହେଁ ।''

ନବୀନ ଦୁଇଟି ପ୍ରବୀଣଙ୍କର
ତଥ୍ୟ ବଚନ ନେଇ
ସସ୍ମିତ ମୁଖେ ବିଦାୟ ଘେନିଲେ
ବିନୀତ ପ୍ରଣାମ ଦେଇ ।



# ଭାରତର ବୀର ବାଳକ ଆମେ...

॥ ୧ ॥

ସ୍ୱାଧୀନ ଦେଶର
ବୀର ସନ୍ତାନ
ଭାରତର ବୀର ବାଳକ ଆମେ,
ଭାରତ ସକାଶେ
ଜଗତ ସକାଶେ
ଶପଥ କରୁଚୁ ଦେଶର ନାମେ ।

॥ ୨ ॥

ଜାଣିଚୁ କେମିତି
ମହାନ୍ ଗାନ୍ଧି,
ଲାଲା ଲାଜପତ୍, ସର୍ଦ୍ଦାର,
ଜବାହର ଲାଲ,
ଲାଲ ବାହାଦୁର
କରିଥିଲେ ଦେଶ ଉଦ୍ଧାର ।

॥ ୩ ॥

ହିଂସା ସମରେ
ରକ୍ତ ନ ନେଇ,
ଆପଣ ଛାତିର ରକ୍ତ ଦେଇ
ଦେଶର ମୁକ୍ତି
ଆଣିଲେ ଯେମିତି,
ଜଗତେ ସେମିତି କରିଚି କେହି ?

॥ ୪ ॥

ଗୋଟି ଗୋଟି ସେଇ
ଜୀବନର ଲେଖ
ଜଳୁଅଛି ଆମ ଆଖିର ଆଗେ

ଜୀବନରେ ତାହା
ଆଲୁଅ ହୋଇଚି,
ସାଇତି ରଖିବୁ ମରମ ଭାଗେ ।

॥ ୫ ॥

ଭାରତର ଶିରୀ
ବଢ଼ାଇବୁ ଆମେ,
ରଖିବୁ ଆମ ଏ ଦେଶର ମାନ,
ଜଗତରେ ଆଉ
ଆଉ ଦେଶ ପାଇଁ
ଆଲୁଅ ଆମର କରିବୁ ଦାନ ।

॥ ୬ ॥

ହିଂସାର ବାଦ
ଲୁପ୍ତ କରିବୁ,
ରକ୍ତ ଲଢ଼େଇ ରଖିବୁ ନାହିଁ,
ପ୍ରାଣେ ପ୍ରାଣେ ସ୍ନେହ –
ମମତା ଆଣିବୁ,
ଜଗତେ ସଭିଏଁ ଭଉଣୀ ଭାଇ ।

॥ ୭ ॥

ହସି ହସି ଆମେ
ଏକ ଆନ ପାଇଁ
ଜୀବନ ଢାଳିବୁ ଏ ଧରାଧାମେ,
ସ୍ୱାଧୀନ ଦେଶର
ବୀର ସନ୍ତାନ,
ଭାରତର ବୀର ବାଳକ ଆମେ ।



## କରୁଣା ତାହାର ଶୁଭ ନାଆଁ

॥ ୧ ॥

ସାତ ଆଠ ଫୁଟ୍
ପାଣି ପୂରି ଅଛି,
ବରିହା ପାଲିର ପୋଖରୀରେ
ସୁନ୍ଦର କେତେ
କଇଁଫୁଲ ଫୁଟି
ଦୋଳି ଖେଳୁଅଛି ଲହରୀରେ ।

॥ ୨ ॥

ହେମ, ପ୍ରିୟ, ଦାମ
ନନ୍ଦୀ, ଗଣେଶ
ଖେଳି ଖେଳି କେତେ ଛୋଟ ପିଲା,
ସ୍ନାନ କରୁଥିଲେ,
ଫୁଲ ତୋଳୁଥିଲେ,
ମନରେ ହରଷ ଭରା ଥିଲା ।

॥ ୩ ॥

ତାହାରି ଭିତରେ
ନନ୍ଦୀ ଗଣେଶ
ଗହୀର ପାଣିରେ ଖେଳୁଥିଲେ,
ଗହୀର ପାଣିରେ
ପହଁରି ପହଁରି
ବାଛି ବାଛି ଫୁଲ ତୋଳୁଥିଲେ ।

॥ ୪ ॥

ହଠାତ୍ ସେଇଠି
ହୁରି ପଡ଼ିଗଲା,
ହଠାତ୍ ସେଇଠି ହେଲା ହୁରି,
ନନ୍ଦୀ ଗଣେଶ
ବୁଡ଼ିଗଲେ ଆରେ,
ନନ୍ଦୀ, ଗଣେଷ ଗଲେ ବୁଡ଼ି ।

॥ ୫ ॥

ଗଣେଶ କେମିତି
ଉବୁକି ଉଠିଲା
ସାହସ ବାନ୍ଧି ପହଁରିଲା,
ଶକତି ତାହାର
ଠୁଳ କରିଦେଇ
ବାହା ପିଟି କୂଳେ ପହଁରିଲା ।

॥ ୬ ॥

ମାତର ସେଇଠି
ଉବୁଟୁବୁ ହେଲା
କଇଁ ନାଡ଼େ ହୋଇ ବନ୍ଦୀ,
ପୋଖରୀ ଭିତରେ
ବୁଡ଼ି ଗଲା ଆରେ
ଧାଇଁ ଆସ କିଏ ଜଲ୍‌ଦି ।



॥ ୭ ॥

କରୁଣା ତ ଏଣେ
ଏ ପାଖରେ ଥିଲା
ସାହସ ବାନ୍ଧି ପହଁରିଲା,
ଛାତିରେ ତାହାର
ସବୁ ବଳ ଘେନି
ସତ୍ୟ କତିରେ ପହଁଚିଲା ।

॥ ୮ ॥

ମଥାରେ ତାହାକୁ
ଠେଲି ଠେଲି ନେଇ
ଲଗାଇଲା ସେଇ କୂଳଠାଇଁ;
ସାଥୀର ଜୀବନ
ବଞ୍ଚାଇ ଦେଲା
ଉଷତ ସଭିଏ ସେଥିପାଇଁ ।

॥ ୯ ॥

ପଦ୍ମପୁର୍‌ର
ଇଲାକା ଭିତରେ
''ବରିହା ପାଲି'ଟି ଛୋଟ ଗାଆଁ,
ସେଇ ଗାଆଁଟିର
ଛୋଟ ପିଲାଟିଏ
କରୁଣା ତାହାର ଶୁଭ ନାଆଁ ।

॥ ୧୦ ॥

ବୁଡ଼ି ଯାଉଥିଲା
ଜୀବନ ରଖିଲା
ରାଇଜରେ ହେଲା ଧନ୍ୟ
ଛୋଟ ବୟସରେ
ବଡ଼ କାମ କରି
ବଡ଼ ବୋଲି ହେଲା ଗଣ୍ୟ ।

